ସଙ୍ଗେ ଲଢ଼ୁଥିବୁ, ନିଜର ଆତ୍ମଶୁଦ୍ଧି କରୁଥିବୁ, ତା ବଡ଼ କଠିନ କାମ । ଦୁ'ଜଣ ଗୁଳି ଦୁ' ପ୍ରକାରେ ଖାଇ ପାରନ୍ତି । ଦୋଷୀ ଦୋଷ କରି ଗୁଳି ଖାଉଛନ୍ତି, କିନ୍ତୁ ସେଥିରେ କ'ଣ ସ୍ୱରାଜ୍ୟ ମିଳିବ ? ଆତ୍ମଶୁଦ୍ଧି ପାଇଁ ଯେଉଁ ଗୁଳି ଖାଇବାକୁ ପଡ଼େ ସେହି ସ୍ୱରାଜ୍ୟ ଆଣି ଦେବାରେ ସମର୍ଥ ହୋଇଥାଏ । ତାହା କଷ୍ଟକର ଅଟେ । ଯାହାଙ୍କର ଖାଇବାର ନାହିଁ, ପିଇବାର ନାହିଁ, ପିନ୍ଧିବାକୁ ନାହିଁ ସେମାନଙ୍କୁ ଖୁଆଇବା, ପିଆଇବା, ସେମାନଙ୍କୁ ଉଦ୍ୟମ କରେଇବା, ସେମାନଙ୍କୁ ଲୁଗା ପିନ୍ଧେଇବା, ତାଙ୍କର ଭାଗ ତାଙ୍କୁ ଦିଆଇବା, ଏହା ବଡ଼ କଠିନ କାମ । ଉତ୍କଳବାସୀଙ୍କର କି ଭଳି ପ୍ରାଣହୀନ ଅବସ୍ଥା ତାହା ତମ ଭିତରୁ ଅନେକ ଭାଇ ଭଉଣୀ ଜାଣି ନାହଁ । ତାଙ୍କର ଅସ୍ଥି କଙ୍କାଳ କଥା ମୁଁ ଅନେକ ଥର ଖାସ୍ କରି ଭଉଣୀମାନଙ୍କୁ ଜାଣି ଶୁଣି କହୁଛି । ଯଦି ସେ କଥା ମୁଁ ତମକୁ କହି ବସିବି, ତେବେ ତମର ଓ ମୋର ଆଖିରୁ ଲହ ବହିବ । ଏହା ତମକୁ ଅତି ରଞ୍ଜିତ ପରି ଲାଗୁଥିବ । କିନ୍ତୁ ତମକୁ ସେଠାକୁ ନେଇ ଯାଇ ପାରିଲେ ତେମେ ସେ ସବୁ ଆପଣା ଆଖିରେ ଦେଖି ପାରନ୍ତ । ଏ ଅସ୍ଥି କଙ୍କାଳରେ ଟିକିଏ ରକ୍ତ ଲଗେଇ ଦେବା, ଟିକିଏ ମାଂସ ପୁରେଇ ଦେବା ବଡ଼ କଠିନ କାମ । କିନ୍ତୁ ସେୟା ଆମର ପ୍ରତିଜ୍ଞା ।

"ଏ ପ୍ରତିଜ୍ଞା ପୂରଣ ନ କରିବା ଯାଏ, ତମ ମୁଣ୍ଡରେ କରଜ ରହିଛି ବୋଲି ଜାଣି ରଖ । ସେ କରଜ ଶୁଝିବାକୁ ତମକୁ ମତେ ସମସ୍ତଙ୍କୁ ଈଶ୍ୱର ସୁମତି ଓ ଶକ୍ତି ଦିଅନ୍ତୁ ।"

---

ସ ମା ପ୍ତ

Printed by U. C. Mohanty, C. P, Press, Cuttack—1949.

